❒ ସପନ ପୁରୀରେ ପିଙ୍କୁ

❒ ଲେଖକ ଶ୍ରୀ ଲକ୍ଷ୍ମୀକାନ୍ତ ଖୁଣ୍ଟିଆ

❒ ପ୍ରଥମ ପ୍ରକାଶ ୧୯୯୨

❒ ପ୍ରକାଶକ ପଲ୍ଲୀ ପ୍ରଭା ପ୍ରକାଶନୀ
ସା : ପୋ : ପାଳସାହି
ଜି : ଖୋର୍ଦ୍ଧା - ୭୫୨୧୧୪

❒ ଅଳଂକରଣ ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାନ୍ତି

❒ ମୁଦ୍ରଣ ସତ୍ୟନାରାୟଣ ପ୍ରେସ
ଡ଼ଗରପଡ଼ା, କଟକ

❒ ମୂଲ୍ୟ ଛଅଟଙ୍କା ମାତ୍ର

❒ **SAPANA PURIRE PINKU**
(PINKU IN DREAM - LAND)

❒ Author Sri Laxmikanta Khuntia

❒ First Edition 1992

❒ Publisher Palliprava Prakasani
At/po Palsahi, Via - Rench
Dist - Khurda - 752114

❒ Illustrction- Gobinda Mohanty

❒ Print Satyanarayan press
Dagarpara, Cuttack

❒ Cost- Rupees Six Only




ସେ ଦିନ ରାତିରେ ପିଙ୍କୁ ତା' ଶେଯରେ ଶୋଇ ମନକୁ ମନ ଭାବୁଥାଏ - ''ଡିସେମ୍ବର ମାସ ସରିବାକୁ ବସିଲାଣି । ଆଉ ଦିନ କେଇଟା ପରେ ନୂଆ ବରଷ ଆସି ଯିବ । ଚାରିଆଡେ କେତେ ମଜାମଉଛବ ହେବ । ଏ ବର୍ଷ ଶୀତଟା ବି ଟିକେ ଜୋର୍‌ରେ ପଡିଛି । ତେଣୁ ଦେହରୁ ଶୀତ ପୋଷାକ କାଢ଼ିବାକୁ ମନ ହେଉନି । ଆଗରେ ପୁଣି ପରୀକ୍ଷା ! ସବୁ ବର୍ଷ ପରୀକ୍ଷା ପରେ ତାଙ୍କ ସ୍କୁଲ୍‌ର ପିଲାମାନେ ବୁଲିଯାଆନ୍ତି । ଏ ବର୍ଷ ଯିବେନି ନା କ'ଣ ? ଅନ୍ୟ ସ୍କୁଲ୍‌ର ପିଲାମାନେତ ବୁଲିକରି ଆସିଲେଣି । ଶୀତ ଦିନ ଚାଲିଗଲେ କ'ଣ ଆଉ ବୁଲିବାକୁ ଭଲ ଲାଗିବ ? ଗଲାବର୍ଷ ସେମାନେ ଧଉଳିଗିରି, ଖଣ୍ଡଗିରି ଓ ନନ୍ଦନକାନନ ବୁଲି ଯାଇଥିଲେ । ଏ ବର୍ଷ କପିଳାସ ଯିବାକୁ ସାର୍ କହୁଥିଲେ । ହେଲେ ଏ ଯାଏଁ ତ କାହିଁକି ସୋର ଶବଦ ନାହିଁ । କାଲି ନିଶ୍ଚୟ ସେ ସାର୍‌ଙ୍କୁ ଏକଥା ପଚାରିବ । କାହିଁକିନା ଏଥର ପ୍ରଥମାଷ୍ଟମୀକୁ ମାମୁଁ ତା ପାଇଁ ଯେଉଁ ଜୋତା ମୋଜା ଆଉ ଟୋପି ଆଣିଛନ୍ତି, ସେଇଆଁକୁ ପିନ୍ଧି ସେ ବୁଲିଯିବ । ପୋଷାକଟା ନିଶ୍ଚୟ ସମସ୍ତେ ପସନ୍ଦ କରିବେ ।'' ଏମିତି ଭାବୁ ଭାବୁ କେତେବେଳେ ଯେ ତାକୁ ନିଦ ଆସିଯାଇଛି, ସେ କଥା ସେ ଜାଣିପାରିନାହିଁ । ତା'ରି ଭିତରେ ସେ ସ୍ୱପ୍ନରେ ଦେଖିଲା....

# ସପନ ପୁରୀରେ ପିଙ୍କୁ

ଶ୍ରୀ ଲକ୍ଷ୍ମୀକାନ୍ତ ଖୁଣ୍ଟିଆ

ପଲ୍ଲୀପ୍ରଭା ପ୍ରକାଶନୀ
ସା : ପୋ : ପାଳସାହି, ଭାୟା - କରଞ୍ଜ
ଜି : ଖୋର୍ଦ୍ଧା - ୭୫୨୧୧୪






ତା' ସାଥିମାନେ କପିଳାସ ବୁଲିଯିବା ପାଇଁ ତାକୁ ଡାକିବାକୁ ଆସିଛନ୍ତି । ସେମାନେ କେତେରକମର ପୋଷାକ ପିନ୍ଧିଛନ୍ତି । ନିଜ ପାଖରେ ପାଣି ବୋତଲ ଓ ଜଳଖିଆ ରଖିଛନ୍ତି । ତା' ବୋଉ ବି ତାକୁ ଭଲ ଭାବରେ ସଜାଇ ଦେଇଛନ୍ତି । ସେ ଠିକ୍ ଗୋଟିଏ ସାହେବ ପିଲା ଭଳି ଦେଖାଯାଉଛି ।



ତାପରେ ସେମାନେ ଯାଇ ସ୍କୁଲ ବସ୍‌ରେ ବସିଲେ । ବସ୍ ଚାଲିଲା ଆଗକୁ ଆଗକୁ । ପିଲାମାନେ ଆନନ୍ଦରେ "ହିପ୍ ହିପ୍ ହୁର୍‌ରେ"..... କହି ହୋ ହଲ୍ଲା କରୁଥାନ୍ତି । ପିଙ୍କୁର କିନ୍ତୁ ସେ ଆଡେ ନଜର ନଥାଏ । ରାସ୍ତାର ଦୁଇ ପାଖରେ କେତେ ରକମର ନୂଆ ନୂଆ ଜିନିଷ ଦେଖି ତାକୁ ଭାରି ଭଲ ଲାଗୁଥାଏ । ବାଟରେ ତା' ବୟସର ପିଲାଙ୍କୁ ଦେଖି ପିଙ୍କୁ ଭାରି ଖୁସି ହେଉଥାଏ । ବେଳେବେଳେ ସେମାନଙ୍କୁ ହାତ ହଲାଇ 'ଟା ଟା' କରିଦେଉଥାଏ ।



ଢେଙ୍କାନାଳ ସହର ପାରି ହୋଇ ବସ୍‌ଟି ପୁଣି ଆଗକୁ ଚାଲିଲା ଏବଂ ଅନେକ ସମୟପରେ ଯାଇ କପିଳାସ ଠାରୁ ଟିକେ ଦୂରରେ ଅଟକିଲା । ରାସ୍ତାର ବାଁ ପଟେ ଖୁବ୍ ବଡ଼ ପଡ଼ିଆଟିଏ । ସେଇଠି ତାର ଜାଲି ଭିତରେ କେତେଗୁଡ଼ିଏ ହରିଣ ଛୁଆ ଖେଳୁଥାନ୍ତି । ସେମାନଙ୍କୁ ଦେଖି ପିଲାଙ୍କ ଖୁସି କହିଲେ ନସରେ । ପିଙ୍କୁ



ବି ଭାରି ଖୁସି ହୋଇଗଲା । ସେମାନଙ୍କୁ ଛାଡି ଆସିବାକୁ ତା'ର ଜମା ମନ ହେଉନଥାଏ । ହେଲେ ସାର୍‌ଙ୍କର ନିର୍ଦ୍ଦେଶ ପ୍ରଥମେ ଯାଇ କପିଳାସରେ ପହଞ୍ଚିବାକୁ ପଡ଼ିବ । ତା'ପରେ ଯୋଉ କଥା । ଆଉ ସତକୁ ସତ ଅଳ୍ପ ସମୟ ପରେ ସେମାନେ ଯାଇ କପିଳାସ ପାଖରେ ପହଞ୍ଚିଗଲେ ।

ପିଲାମାନେ ବସ୍‌ରୁ ଓହ୍ଲାଇବା ଆଗରୁ ପିଙ୍କୁ ଓ ତା' ସାଙ୍ଗ ରାକେଶ ଆଗ ଓହ୍ଲାଇ ପଡ଼ିଲେ । ପାହାଡ଼ ପାଦଦେଶରେ ଥିବା ବାସୁଆ ବଳଦ ପାଖକୁ ଦଉଡିଲେ ।



ବାସୁଆକୁ ଦେଖି ପିଙ୍କୁ କହିପକାଇଲା "ବୁଝିଲୁ ରାକେଶ ! ଆମ ଘରେ ବି ଠିକ୍ ଏମିତି ଗୋଟେ କାଠର ମୂର୍ତ୍ତି ଅଛି । ମୁଁ ଅନେକ ଥର ତା' ଉପରେ ବସିଛି ଆଉ ପଡିଯାଇଛି ।ଆଜି ଯା ଉପରେ ବସିଲେ କେମିତି ହୁଅନ୍ତା ?" ଏତିକି କହି ସେ ରାକେଶକୁ ଭିଡି ନେଇ ବାସୁଆ ଉପରେ ବସିପଡିଲା । ତା'ବାପା ଯେମିତି ମଟର ସାଇକେଲ୍ ହ୍ୟାଣ୍ଡଲକୁ ମୋଡି ଚଳାନ୍ତି, ସେମିତି ସେ ବାସୁଆ କାନ ଦି'ଟାକୁ ଧରି ଟିକେ ମୋଡି ଦେଲା । ଆଉ ତା'ପରେ ? ଆଶ୍ଚର୍ଯ୍ୟର କଥା ଉଡାଜାହାଜ ଆକାଶକୁ ଉଠିଲା ପରି ବାସୁଆଟା ସେ ଦୁହିଁକୁ ଧରି ଉପରକୁ ଉଠିବାକୁ ଲାଗିଲା । ଆଗରେ ପିଙ୍କୁ, ଆଉ ତା' ପଛରେ ରାକେଶ । ବାସୁଆ ଆକାଶରେ ଉଡୁଥାଏ - ପିଙ୍କୁ ଆଉ ରାକେଶ ଆଶ୍ଚର୍ଯ୍ୟ ହୋଇ ମନକୁ ମନ ଭାବୁଥାନ୍ତି । ଏ କ'ଣ ହେଲା ?

ଏଣେ ପିଲା ଓ ସାର୍‌ମାନେ ଆସି ଦେଖନ୍ତି ତ, ବାସୁଆଟା ତା' ଜାଗାରେ ନାହିଁ । ପୁଣି ପିଙ୍କୁ ଓ ରାକେଶର ମଧ୍ୟ ଦେଖା ମିଳୁନି । କଥା କ'ଣ ? ଏଦୁହେଁ ଗଲେ କୁଆଡେ ? ଏତିକି ବେଳେ ପିଙ୍କୁର ସାନ ଭଉଣୀ ରାଲି କେଜାଣି କାହିଁକି ଉପରକୁ ଟିକେ ଚାହିଁ ଦେଲା ।



ଆରେ ! ଏ କ'ଣ ? ପିଙ୍କୁ ଭାଇ ଆଉ ରାକେଶ ଭାଇ ତ ବାସୁଆ ଉପରେ ବସି ଉପରେ ଉଡୁଛନ୍ତି । ତା'କଥାରେ ଅନ୍ୟମାନେ ବି ଉପରକୁ ଚାହିଁଲେ । ସତେତ, ପିଲା ଦି'ଟା ବାସୁଆ ପିଠିରେ ବସି ନିର୍ଭୟରେ ଆକାଶରେ ଉଡି ଯାଉଛନ୍ତି ।

ସାର୍‌ମାନେ କୁହାକୋହି ହେଲେ ଆଗରୁ ତ ସେମାନେ ଏଠିକି କେତେଥର ଆସିଛନ୍ତି । ହେଲେ ଏମିତି କେବେ ଘଟିନି । ଆଜି ଏ ନୂଆ ଘଟଣା ଘଟିଲା କିପରି ? ପୁଣି ଛୋଟ ପିଲା ଦି'ଟା କ'ଣ ତାଙ୍କ ଅବସ୍ଥା ହେବ ? କେଉଁ ଆଡେ ସେମାନେ ଯିବେ ? କ'ଣ ଖାଇବେ ? ଏସବୁ କଥା ଭାବି ଭାବି ସେମାନେ ମନଦୁଃଖରେ ପାଖରେ ଥିବା ପଥର ଉପରେ ବସିପଡିଲେ ।

ପିଙ୍କୁ ଓ ରାକେଶ ବାସୁଆ ପିଠିରେ ଆରାମରେ ବସିଥାନ୍ତି । ନଈନାଳ, ଗଛଲତା, ସାଙ୍ଗସାଥୀ କାହାରିକୁ ଆଉ ଦେଖି ହେଉନାହିଁ । ସେମାନେ ବୋଧହୁଏ ବହୁତ ଦୂରକୁ ଚାଲି ଆସିଲେଣି । ଏତିକିବେଳେ ରାକେଶ କହିଲା - ''ପିଙ୍କୁ ! ମତେ ଭାରି ଡର ଲାଗୁଛି । ତଳକୁ କେମିତି ଓହ୍ଲାଇବାଯେ ?''

ପିଙ୍କୁ କହିଲା - ''ତୁ ମୋଟେ ଭୟ କରନା । ମୋ ପାଖକୁ ଲାଗିକରି ବସିଥା । ଦେଖିବା କ'ଣ ହେଉଛି । ତା ଛଡା ଆମ ଦେଶର ମହାକାଶ ଯାତ୍ରୀ ରାକେଶ ଶର୍ମା ତ ପୁଣି ଆକାଶରେ ଉଡୁଥିଲେ । ତାହାହେଲେ ଆମେ ଭୟ କରିବା କାହିଁକି ?''

ଦୁହେଁ ଏମିତି କଥା ହେଉଥିବା ବେଳେ ଗୋଟେ ବଡ ପୋକ ଉଡିଆସି ବାସୁଆର ବାଁ କାନ ଉପରେ ବସିଗଲା । ପିଙ୍କୁ ତାକୁ ଉଡାଇ ଦେଉ ଦେଉ ବାସୁଆର ସେଇ କାନଟା ପୁଣି ଟିକେ ମୋଡି ହୋଇଗଲା ।



ଆରେ ! ଏ କ'ଣ ? ବାସୁଆତ ଆଉ ଉଡୁନି । ଖାଲି ମୁହଁଟାକୁ ତଳକୁ କରି ଖସିବାରେ ଲାଗିଛି । ସେମିତି ଖସି ଖସି ଆସି ଗୋଟେ ବଡ ପାହାଡ ଉପରେ ସେ ସ୍ଥିର ହୋଇ ରହିଗଲା ।

ସେ ପାହାଡଟା ଖୁବ୍ ଉଚ୍ଚ । ଭାରି ଖସଡା ମଧ୍ୟ । ଗୋଡ ଖସିଗଲେ ଯାଇ ଏକାବେଳେ ତଳେ ପଡିଯିବ । ତେଣୁ ପିଙ୍କୁ ଓ ରାକେଶ ଖୁବ୍ ସାବଧାନରେ ଚାଲୁଥାନ୍ତି । ପାହାଡ ତଳେ ନଈଟିଏ ବହିଯାଉଥାଏ । ଉପରୁ ଚାହିଁଲେ ଭାରି ସୁନ୍ଦର ଦେଖାଯାଉଥାଏ । ନଈ ପାଖକୁ ଲାଗି ପୁଣି ମନ୍ଦିରଟିଏ । ତା ଦେହରେ ସୂର୍ଯ୍ୟ କିରଣ ପଡି ଆଖି ଝଲସାଇ ଦେଉଥାଏ ।

ମନ୍ଦିର ଦେଖିବାକୁ ପିଙ୍କୁର ଭାରି ମନ ହେଲା । ହେଲେ ସେଠିକି ବହୁତ ପାହାଚ ଡେଇଁ ହୁସିଆର ହୋଇ ଯିବାକୁ ପଡିବ । ଟିକେ ଏପଟ ସେପଟ ହେଲେ ତଳେ ପଡିଯିବାର ଭୟ । ତେଣୁ ରାକେଶ ସେଠିକି ଯିବାକୁ ଜମା ରାଜି ହେଲା ନାହିଁ । କିନ୍ତୁ ପିଙ୍କୁ ତାକୁ ବହୁତ ବୁଝାଇ କହିଲା । ତା' ହାତ ଧରି ବାଟ ଚାଲିଲା । ଦୁହେଁ ଖୁବ୍ ସାବଧାନରେ ପାହାଚ ଦେଇ ଓହ୍ଲାଇବାରେ ଲାଗିଲେ । ଏତିକି ବେଳେ ପିଙ୍କୁ ଦେଖିଲା ପାଖରେ ପୋତା ଯାଇଥିବା ଗୋଟେ ଖୁଣ୍ଟିରେ କାଗଜ ଫୁଲର ମାଳଟିଏ ଝୁଲୁଛି । ମାଳଟା ଭାରି ସୁନ୍ଦର ଦିଶୁଥାଏ । ସେ ଆଉ ଲୋଭ ସମ୍ଭାଳି ପାରିଲାନି । ମାଳଟାକୁ ନେବା ପାଇଁ ତା'ର ଗୋଟାଏ ମୁଣ୍ଡକୁ ଧରି ପକାଇଲା । କିନ୍ତୁ ଏ କ'ଣ ? ସତେ ଯେମିତି କେହି ତାକୁ ପାହାଡ ତଳର ସେଇ ନଈ ଭିତରକୁ ଟାଣି ନେଉଛି । ସେ ଏଥର ପାଟି କରି କହି ପକାଇଲା - ରାକେଶ, ଶୀଘ୍ର ମାଳଟାର ଆର ମୁଣ୍ଡ ଧରିପକା । ଆଉ ରାକେଶ ବି ସେଇଆ କଲା । ତା'ପରେ ଦେଖାଗଲା, ପିଲା ଦୁଇଟି ସେଇ ମାଳର ଦୁଇ ମୁଣ୍ଡକୁ ଧରି ଧୀରେଧୀରେ ତଳକୁ ଖସୁଛନ୍ତି ।



କିନ୍ତୁ ଏହା ଭିତରେ ରାକେଶ ଭାରି ଡରିଯାଇଛି । ଗୋଟାଏ ବିପଦରୁ ରକ୍ଷା ପାଇସାରିବା ପରେ ପୁଣି ଆଉ ଗୋଟାଏ ବିପଦ । ଆଉ ଏଥିପାଇଁ ପିଙ୍କୁହିଁ ଦାୟୀ । ରାକେଶ ଏମିତି ଭାବି ହେଉଥିଲାବେଳେ ସେ ଦୁହେଁ ଆସି ନଈ କୂଳର ଗୋଟାଏ ଜାଗାରେ ପହଞ୍ଚିଲେ । ଆଃ କି ସୁନ୍ଦର ପାଣି । ସେ ପାଣିରେ ପୁଣି କେତେ ରକମର ମାଛ ପହଁରୁଛନ୍ତି । ହେଲେ ସେମାନେ ସାଧାରଣ ମାଛଙ୍କପରି ଜଣାପଡୁନଥାନ୍ତି । ସେମାନଙ୍କ ଦେହର ଅଧା ଯାଏଁ ମାଛଭଳି । କିନ୍ତୁ ଅଣ୍ଟା ଠାରୁ ମୁଣ୍ଡଯାଏଁ ମଣିଷଭଳି । ଖାଲି ସେତିକି ନୁହେଁ । ତାଙ୍କ ଦେହରେ ଦୁଇଟି ଲେଖାଁଏ ଡେଣା ବି ଲାଗିଛି ।



ପିଲା ଦୁହିଁଙ୍କୁ କୂଳରେ ଦେଖି ସେହି ମାଛଙ୍କ ଭିତରୁ ଗୋଟିଏ ହସି ହସି ତାଙ୍କ ପାଖକୁ ଚାଲିଆସିଲା ଏବଂ ମଣିଷ ପରି କହିଲା - ପିଙ୍କୁବାବୁ ! କାହିଁକି ମୁହଁଟା ଶୁଖାଇଦେଇଛ ? ରାକେଶବାବୁଙ୍କର ବି ସେଇ ଅବସ୍ଥା । କଥା କ'ଣ ? ବାଟରେ କିଛି ଅସୁବିଧା ହେଲାକି ?

ଏକଥା ଶୁଣି ପିଙ୍କୁ ଆଉ ରାକେଶ ଏକଦମ୍ ଆଶ୍ଚର୍ଯ୍ୟ ହୋଇଗଲେ । ମନେ ମନେ ଭାବିଲେ ମାଛଟା ତାଙ୍କ କଥା ଜାଣିଲା କିପରି ? ତେଣୁ ପିଙ୍କୁ ପଚାରିଲା - ତମେ କିଏ ? ତମେତ ଆମ ଆଡ଼ର ମାଛ ପରି ଦିଶୁନ । ପୁଣି ଆମ ପରି କଥାବାର୍ତ୍ତା ବି କରୁଛ । ମୁଁ ଜେଜେ ମାଆଙ୍କଠାରୁ ଜଳପରୀଙ୍କ କଥା ଶୁଣିଥିଲି । ତୁମେ ତାହେଲେ କ'ଣ ସେଇ ଜଳପରୀ ?

ମାଛଟି ହସିଦେଇ କହିଲା - ହଁ ତମ କଥା ଠିକ୍ । ମୁଁ ଗୋଟିଏ ଜଳ ପରୀ । ଏଇ ନଈ ଭିତରେ ଆମ ରାଇଜ । ସବୁଦିନେ ମୁଁ ସାଙ୍ଗସାଥୀ ମେଳରେ ପାଣି ଉପରକୁ ଖେଳିବାକୁ ଚାଲିଆସେ । ଭଲ ହେଲା, ତୁମେଦୁହେଁ ଆଜି ପହଞ୍ଚିଯାଇଛ । ଏବେ ଆସ ଆମ ଘର ଟିକେ ବୁଲିଆସିବ ।

ପରୀ ସାଙ୍ଗରେ ଦୁହେଁ ଯିବାକୁ ବାହାରିଲେ, ଆଗରେ ପରୀ ଏବଂ ତା'ପଛେ ପଛେ ପିଙ୍କୁ ଓ ରାକେଶ । ପରୀ ଯେଉଁବାଟେ ଯାଉଥାଏ, ସେଠି ନଈର ପାଣି ଦି'ଭାଗ ହୋଇଯାଉଥାଏ । କିଛିବାଟ ଗଲାପରେ ସେମାନେ ପରୀ ମହଲରେ ପହଞ୍ଚିଗଲେ । ପରୀ ସେମାନଙ୍କୁ ନେଇ ଗୋଟିଏ ଘରେ ବସାଇ ଦେଲା । ତା'ପରେ ସେଠୁ ଚାଲିଗଲା । ପିଙ୍କୁ ବସିବ କ'ଣ ଖାଲି ଘରସାରା ବୁଲି ବୁଲି ଦେଖୁଥାଏ । ଘର ଭିତରେ ସେ ଅନେକ ପ୍ରକାରର ନୂଆ ନୂଆ ଜିନିଷ ଦେଖିବାକୁ ପାଉଥାଏ । ଏତିକି ବେଳେ ପରୀଟି ଆସି ପହଞ୍ଚିଗଲା । ହାତରେ ତା'ର ଦୁଇଟି ଫଳରସର ଗ୍ଲାସ । ସେତେବେଳକୁ ପିଙ୍କୁ ଓ ରାକେଶକୁ ଭାରି ଶୋଷ ହେଉଥିଲା । ତେଣୁ ମନ ଖୁସିରେ ଦୁହେଁ ସେତକ ପିଇଦେଲେ । ହେଲେ ଠିକ୍ ତା'ପରେ ପରେ ଦେଖାଗଲା ଦୁହେଁ ଅବିକଳ ପରୀ ଭଳି ଦେଖାଯାଉଛନ୍ତି । ଏକଥା ଦେଖି ରାକେଶକୁ ଭାରି ଡର ଲାଗୁଥାଏ । ହେଲେ



ପିଙ୍କୁକୁ ଭାରି ମଜା ଲାଗୁଥାଏ । ତଥାପି ସେ ପଚାରିଦେଲା । ଆଚ୍ଛା ପରୀ ରାଣୀ ! ତମେ ଆମକୁ ଏପରି କୁହୁକ କଲ କାହିଁକି ?-

ପରୀଟି ହସିଦେଇ କହିଲା - "ଏପରି ନ କରିଥିଲେ ତୁମେ ଦୁହେଁ ମୋ ସାଙ୍ଗରେ ଆଉ କୁହୁକପୁରୀ ବୁଲି ଦେଖିପାରି ନଥାନ୍ତ । ଏଥର ତୁମେ ଠିକ୍ ଆମରିପରି ଆକାଶରେ ଉଡ଼ିପାରିବ, ଆଉ ପାଣିରେ ବି ବୁଡ଼ିପାରିବ । ତେଣୁ ଏ କୁହୁକ ରାଇଜ ବୁଲି ଦେଖିବାରେ ଆଉ କିଛି ଅସୁବିଧା ହେବନାହିଁ । ତା'ଛଡ଼ା ଆମର ଏଠି କେତେକ ଦୁଷ୍ଟାପରୀ ବି ଅଛନ୍ତି । ସେମାନେ ଭାରି ହିଂସ୍ର । କାଳେ ସେମାନଙ୍କ ଭିତରୁ କେହି ତୁମକୁ ଚିହ୍ନି ପକାଇବେ, ସେଇଥିପାଇଁ ଫଳ ରସ ଦେଇ ତୁମ ରୂପ ବଦଳାଇ ଦେଲି ।

ଏକଥା ଶୁଣି ପିଙ୍କୁ ମନେମନେ ପରୀକୁ ଧନ୍ୟବାଦ ଦେଲା । ରାକେଶ ବି କଥାଟା ବୁଝିଗଲା । ତେଣୁ ତା'ମନରେ ଆଉ ଭୟ ରହିଲାନାହିଁ ।

ଏହାପରେ ଦୁହେଁ ପରୀ ରାଣୀ ସହିତ ବୁଲି ବାହାରିଲେ । ରାଇଜସାରା ବୁଲି ଦେଖୁଥାନ୍ତି । ବାଡି ବଗିଚାରୁ ଫୁଲ ତୋଳୁଥାନ୍ତି । କେତେ ରଙ୍ଗର ପ୍ରଜାପତିଙ୍କୁ ଦେଖି ପିଙ୍କୁ ମନ ଖୁସି ହୋଇଯାଉଥାଏ । ବୁଲି ବୁଲି ଥକିଗଲେ ବି ତାଙ୍କୁ ବାଧା ଲାଗୁ ନଥାଏ । ଭୋକ ଶୋଷ ବି ଜଣା ପଡୁନଥାଏ । ଏମିତି ବୁଲି ବୁଲି ଯାଇ ସେମାନେ ଗୋଟିଏ ବଡ଼ କୋଠା ଘର ପାଖରେ ପହଞ୍ଚିଗଲେ ।

ପିଙ୍କୁ ପଚାରିଲା - ପରୀରାଣୀ ! ଏ ଘରଟି କ'ଣ ?



ପରୀ କହିଲା - ଏଇଟା ଆମ ରାଇଜର ସବୁଠୁ ଆଶ୍ଚର୍ଯ୍ୟ ଜାଗା, ମାନେ ଯାଦୁଘର । ଭିତରକୁ ଗଲେ ସବୁ ଜାଣିପାରିବ ।

ତା'ପରେ ସେମାନେ ଯାଇ ସେହି ଘର ଦୁଆର ପାଖରେ ପହଞ୍ଚିଗଲେ । ପରୀଟି ଗୋଟାଏ ଖାତାରେ କ'ଣ ଟିକେ ଲେଖିଦେଲା । ତା'ପରେ ଦୁଆରଟା ଆପେ ଆପେ ଖୋଲି ଗଲା । ଆଉ ଦୁଆର ଖୋଲିବା ମାତ୍ରେ ପରୀଟି ପିଙ୍କୁ ଓ ରାକେଶଙ୍କୁ ଘର ଭିତରକୁ ଏକରକମ ଭିଡ଼ିନେଇଗଲା । ତା'ପରେ ପରେ ଦୁଆରଟା ଆପେ ଆପେ ବନ୍ଦ ହୋଇଗଲା ।



ପିଙ୍କୁ ଘରର ଚାରିଆଡେ ଟିକେ ଆଖି ବୁଲେଇ ନେଇ କହିଲା - ପରୀ ରାଣୀ ଆମ ଯାଦୁଘରମାନଙ୍କରେ ତ କେତେ ରକମର ପଥର ମୂର୍ତ୍ତି ଆଉ ଛବିମାନ ରହିଛି । ହେଲେ ତୁମର ଏଠି ତ ସେ ସବୁ କିଛି ନାହିଁ ।

ପରୀ କହିଲା - ଏଇଟା ପରା ପରୀରାଇଜ ! ତେଣୁ ସେସବୁ ଜିନିଷ ଏଠିକି ଆସିବ କିପରି ? ତେବେ ତମେ ଏଠି ତମ ପୃଥିବୀର ଯାଦୁଘର ଠୁଁ ଆହୁରି ଆଶ୍ଚର୍ଯ୍ୟ ରକମର ଜିନିଷମାନ ଦେଖିପାରିବ ।





ଏମିତି କଥା ହେଉ ହେଉ ସେମାନେ ଗୋଟିଏ ବିଚିତ୍ର ଗଛ ପାଖରେ ପହଞ୍ଚିଗଲେ । ସେ ଗଛର ପତ୍ରଗୁଡ଼ିକ ଭାରି ସୁନ୍ଦର । ଭାରି କଅଁଳିଆ । ଆଉ ଗଛ ଡ଼ାଳରେ ଡାଲିଆ ପରି ଗୋଟେ ବଡ ଫୁଲ ବି ଫୁଟିଥାଏ । ସେଇ ଫୁଲ ଭିତରୁ କୁନି ଝିଅଟିଏ ମୁହଁକାଢ଼ି ଚାହିଁଥାଏ । ଏମାନଙ୍କୁ ଦେଖି ସେ ଟିକେ ଫିକ୍ କରି ହସିଦେଲା ।

ପିଙ୍କୁ ପଚାରିଲା - ଫୁଲରାଣୀ ! ତୁମେ ହସିଲ କାହିଁକି ?

ଫୁଲ ଭିତରର ମୁହଁଟି କହିଲା - ତମେ କେଡେ ସାହସୀ ପିଲା ସତେ ! ଆମ ପରୀମହଲକୁ ବି ବୁଲି ଆସିପାରିଲ । ତମର ଏଇ ସାହସ ଯୋଗୁଁ ମତେ ଭାରି ଖୁସି ଲାଗିଲା । ସେଇଥିପାଇଁ ହସିଦେଲି । ତେବେ ଖାଲି ମୁଁ ଏକା ନୁହେଁ; ତୁମର ଏ ସାହସ ପଣିଆକୁ ତମ ପୃଥିବୀରେ ଲୋକେ ବି ସାବାସି ଦେବେ । ତମେ ଖୁବ୍ ନାଁ କରିବ । ଏଇ ନିଅ, କଲମଦୁଇଟି ତୁମକୁ ଉପହାର ଦେଉଛି । ଏହା ଯାଦୁର କଲମ । ଯେତେ ଲେଖିଲେ ବି ଏଥିରୁ କାଳି ସରିବନି । କେତେବେଳେ ବି ବନ୍ଦ ହୋଇଯିବନି । କେବଳ ଯଦି ତମେ କେବେ ପଢ଼ାରେ ଅବହେଳା କରିବ କି ସାର୍ ମାନଙ୍କୁ ମିଛ କହି ଠକିବାକୁ ବସିବ ତା'ହେଲେ ଏ କଲମ ଆଉ ଚାଲିବନି ।

ଏକଥା ଶୁଣି ପିଙ୍କୁ ଆଉ ରାକେଶ ଏକଦମ୍ ଖୁସି ହୋଇଗଲେ । ଦୁହେଁ ଏକ ସ୍ୱରରେ କହି ପକାଇଲେ - ''ବାଃ ଭାରି ମଜାର କଲମତ !''

ଏତିକିବେଳେ ପରୀ କହିଲା - ଆରେ ପିଲେ ! ଏଆଡ଼େ ଆସ । ଆଉ ଗୋଟେ ନୂଆ ଜିନିଷ ଦେଖିବ । ଏଥର ଦୁହେଁ ଫୁଲରାଣୀକୁ ଟା - ଟା କହି ସେଠୁ ଚାଲିଗଲେ । ଏତିକିବେଳେ ପରୀଟି ଗୋଟିଏ ଜିନିଷ ଆଡକୁ ଆଙ୍ଗୁଠି ଦେଖାଇ କହିଲା - ଜାଣିପାରୁଛ ସେଇଟି କ'ଣ ?



ପିଙ୍କୁ ଓ ରାକେଶ ଦେଖିଲେ ଛୋଟ ଜୀବଟିଏ । ଦେଖିବାକୁ କଇଁଛପରି । ପିଙ୍କୁ କହିଲା - ଏଇଟିତ ଠିକ୍ ଆମ ପୃଥିବୀର କଇଁଛପରି ଦେଖାଯାଉଛି !

ପରୀ କହିଲା ନାଁ ଏଇଟି କଇଁଛ ନୁହେଁ । ଆମ ପରୀରାଇଜର କଡୁମ ।

ପିଙ୍କୁ ଓ ରାକେଶ ଦେଖିଲେ ଜୀବଟି ଠୁକୁଠୁକୁ ହୋଇ ଚାଲୁଛି । ଚାଲି ତା'ର ଭାରି ଧୀର । ଏମାନଙ୍କୁ ଦେଖି ସେ ମୁହଁ ଲୁଚାଇ ଚୁପ୍ କରି ପଡ଼ିଗଲା । ଏକଥା ଦେଖି ପରୀଟି କହିଲା - ଆରେ ତୁମକୁ ପରା ପିଲାମାନେ ଦେଖିବାକୁ ଆସିଛନ୍ତି । ତମେ ଏପରି ମୁହଁ ଲୁଚାଇ ପଡିଯାଉଛ କ'ଣ ?



କଡୁମ ଖୋଳ ଭିତରୁ ମୁହଁ କାଢ଼ି କହିଲା - ଏମାନେ ପୃଥିବୀର ପିଲା । ସେଠିକା ପିଲାଏ ନିରୀହ ପ୍ରାଣୀମାନଙ୍କୁ ଖୁବ୍ କଷ୍ଟ ଦିଅନ୍ତି ବୋଲି ମୁଁ ଜାଣେ । କାଳେ ସେମାନେ ମୋତେ ହଇରାଣ କରିବେ; ସେଇଥିପାଇଁ ଖୋଳପା ଭିତରେ ମୁହଁ ଲୁଚାଇଦେଲି ।

କଡୁମ କଥା ଶୁଣି ପିଙ୍କୁ ମନକୁମନ ଭାବିଲା ; ସତେତ ! ସେ ନିଜେ ତ ତା'ବାରିପାଖ ଗୋବରଖାତରୁ ଗୋଟେ କଇଁଛକୁ ଧରି ହଇରାଣ କରିଥିଲା । ଏଥିପାଇଁ ସେ ମନେ ମନେ ଖୁବ୍ ଲଜ୍ଜିତ ହେଲା । ଏତିକିବେଳେ କଡୁମ କହିଲା - ଆସ ପିଲାଏ ଆସ । ତମେମାନେ ଯେତେବେଳେ ଏତେ ବାଟରୁ ସାହସକରି ଆସିଯାଇଛ, ତୁମକୁ ଗୋଟିଏ ମାତ୍ର କଥା କହିବି । କଥା କ'ଣକି ନିରୀହ ଜୀବଜନ୍ତୁମାନଙ୍କ ପ୍ରତି କେବେ ନିଷ୍ଠୁର ହେବନି । କାରଣ ସେମାନଙ୍କର ବି ତୁମରି ପରି ଜୀବନ ଅଛି ! ତୁମରି ପରି ସେମାନେ ବି ସ୍ନେହ ଆଦର ଦରକାର କରନ୍ତି । ବାସ୍ ଏତିକି ମନେ ରଖିଥିବ । ଏବେ ଯାଅ ।

କଡୁମ ପାଖରୁ ବିଦାୟ ନେଇ ଦୁହେଁ ଯାଇ ପରୀ ପାଖରେ ପହଞ୍ଚିଲେ । ସେତେବେଳକୁ ପରୀଟି ଜଣେ ବୁଢ଼ା ପାଖରେ ବସି ତା ସାଙ୍ଗରେ କ'ଣ କଥାବାର୍ତ୍ତା ହେଉଥାଏ । ଦୁହେଁ ଯାଇ ସେଇଠି ବସି ପଡିଲେ । ସେମାନଙ୍କୁ ଦେଖି ବୁଢ଼ାଟି ଦୁହିଁଙ୍କ ହାତକୁ ଦୁଇଟି ପୁଡ଼ିଆ ବଢ଼ାଇଦେଇ କହିଲା - ତାକୁ ଫିଟାଇ ଦିଅ । ସେଥିରେ ଯାହା ଅଛି ଖାଅ । ବହୁତବେଳୁ ଆସିଲଣି ତ ! ନିଶ୍ଚୟ ଭୋକ ହେଉଥିବ ।

ପିଙ୍କୁ ସାଙ୍ଗେ ସାଙ୍ଗେ ପୁଡ଼ିଆଟିକୁ ଫିଟାଇ ଖାଇବାରେ ଲାଗିଲା । ରାକେଶ କିନ୍ତୁ ଟିକେ ଲାଜ ଲାଜ କରୁଥାଏ । ଏକଥା ଦେଖି ବୁଢ଼ା କହିଲା - ରାକେଶବାବୁ; ତୁମକୁ ଭୋକ ଲାଗୁଛି ପରା ! ଖାଉନ କାହିଁକି ? ଖାଇବାରେ କ'ଣ ଲାଜ କରନ୍ତି ?

ସେତେବେଳକୁ ପୁଡ଼ିଆରୁ ସୁନ୍ଦର ସୁନ୍ଦର ଚେରିକୋଳି ଖାଇ ପିଙ୍କୁ ଖୁସିରେ ଟାକରା ଫୁଟାଉଥାଏ । ଆଉ ମନେ ମନେ ଭାବୁଥାଏ ଏ ବୁଢ଼ାଟି ତ ଟି.ଭି.ରେ ସକାଳୁ ଦେଖାଦେଉଥିବା ''ଜି ସାହେବ'' ବୁଢ଼ା ପରି ମନେ ହେଉଛି । ଠିକ୍ ତା'ରି ପରି ନିଶ । ତା'ରି ପରି ସାଲ୍‌ଟାଏ ବି ଦେହରେ ପକାଇଛି । ସେମିତି ହାତ ହଲାଉଛି । ଆଉ ମଜା ମଜା କଥା ବି କହୁଛି । ତେଣୁ ସେ ପରୀ ଟିକୁ ପଚାରିଲା- ଆଚ୍ଛା ପରୀରାଣୀ ! ଏ ବୁଢ଼ାଙ୍କ ନାଁ କ'ଣ ?



ପରୀଟି ଫିକ୍‌କିନା ହସିଦେଇ କହିଲା - ବୁଢ଼ା ! ବୁଢ଼ା କାହାକୁ କହୁଛ ? ଏ ହେଉଛି ଆମ ପରୀ-ରାଇଜର ''ଯନ୍ତ୍ର ମଣିଷ'' । ଯେତେ ଅସାଧ୍ୟ କାମ ଅଛି, ସେ ସବୁ କରିପାରେ । ପିଙ୍କୁ ଏତିକିବେଳେ ପଚାରିଦେଲା- ଆଜ୍ଞା; ତମର ଏ ଯନ୍ତ୍ରମଣିଷ କ'ଣ ଆମ ପୃଥିବୀର ଯନ୍ତ୍ରମଣିଷ ବା ରୋବର୍ଟ ପରି କାମ କରିପାରିବ ?

ପରୀ ପଚାରିଲା- ତୁମ ପୃଥିବୀରେ ବି ତା'ହେଲେ ଯନ୍ତ୍ରମଣିଷ ଅଛି ନା? କି କି କାମ ସେ କରେ କହିଲ ?

ପିଙ୍କୁ କହିଲା- ବହିରୁ ଯାହା ଜାଣିଛି; ସେଇଆ କହୁଛି । ଆମ ମଣିଷମାନେ ଯାହା କରି ନ ପାରିବେ, ସେ କାମକୁ ଆମ ଯନ୍ତ୍ରମଣିଷ ରୋବର୍ଟ ଅତି ସହଜରେ କରି ଦେଇପାରିବ । ଏଇ ଧର ସମୁଦ୍ରରେ ଜାହାଜଟିଏ ବୁଡି ଯାଇଛି ଏବଂ ତା ଭିତରେ ବହୁ ଧନରତ୍ନ ରହିଛି । ସେ ସବୁ ଉଦ୍ଧାର କରିବାତ କେବେ ସମ୍ଭବ ନୁହେଁ, କିନ୍ତୁ ରୋବର୍ଟ ପାଇଁ ଏଇଟା ଗୋଟେ ଅତି ସହଜ କଥା । ବୁଡ଼ିଯାଇଥିବା ଜାହାଜଟାକୁ ରୋବର୍ଟ ମାତ୍ର ଗୋଟାଏ ହାତରେ ପାଣି ଉପରକୁ ଟେକି ନେଇପାରିବ । ଏବେ ତ କେତେକ ଦେଶର ଲୋକେ ରୋବର୍ଟକୁ ଘରର ଚାକର କରି ବି ରଖିଲେଣି । ମାଲିକ ନିଦରୁ ଉଠିଲା ମାତ୍ରେ ରୋବର୍ଟ ଚା' ଜଳଖିଆ ଆଣି ଦେଉଛି । ଘର ଓଳାଇ ସଫା ପରି ଦେଉଛି । ବଡ଼ ବଡ଼ କୋଠାମାନଙ୍କରେ ଲିଫଟ୍‌ମ୍ୟାନ୍ ରୂପେ କାମ କରୁଛି । ରେଳ ଷ୍ଟେସନର ଟିକେଟ କାଉଣ୍ଟରରେ ବସି ଲୋକଙ୍କୁ ଟିକେଟ ବିକ୍ରି କରିପାରୁଛି । ଖାଲି କ'ଣ ସେତିକି ? ରୋବର୍ଟ କବିତା ବି ଲେଖି ପାରୁଛି । ଏଇଥିରୁ ଜାଣୁଥିବ ଆମ ପୃଥିବୀର ରୋବର୍ଟ ନ କରୁଛି କ'ଣ ?

ପରୀ କହିଲା- ଆମ ଯନ୍ତ୍ରମଣିଷ ତୁମ ପୃଥିବୀର ଯନ୍ତ୍ରମଣିଷଠାରୁ କେଉଁ ଗୁଣରେ ଊଣା ବୋଲି ଭାବୁଛ କି ? ଆସ, ତୁମକୁ ଆମ ଯନ୍ତ୍ରମଣିଷର କରାମତି ଦେଖାଇଦେବି ।

ଏତିକି କହି ପରୀଟି ରୋବର୍ଟ କାନରେ କ'ଣ ଫିସ୍ ଫିସ୍ କରି କହିଦେଲା । ଏଥର ରୋବର୍ଟ-ଟି ଟିକେ ମୁରୁକି ହସି ଦେଲା । ଆଉ ତା ସାଙ୍ଗେ ସାଙ୍ଗେ ଟିକେ ମୁଣ୍ଡ ବି ହଲାଇ ଦେଲା । ତାପରେ ପରୀଟି ରୋବର୍ଟର ମୁଣ୍ଡକୁ ଟିକେ ହାତରେ ଚାପି ଦେବାରୁ ସାଙ୍ଗେ ସାଙ୍ଗେ ତା ମୁଣ୍ଡ ଉପରେ ଏକ ରଙ୍ଗିନ୍ ଆଲୁଅ ଦପ୍ କରି ଜଳି ଉଠିଲା । ତାପରେ ପରେ ଦେଖାଗଲା ରୋବର୍ଟଟି ସେଠୁ ଉଭାନ ହୋଇଯାଇଛି

ଏକଥା ଦେଖି ପିଙ୍କୁ ଓ ରାକେଶ ଏକଦମ୍ ଆଶ୍ଚର୍ଯ୍ୟ ହୋଇଗଲେ । ରୋବର୍ଟଟା ଆଖିପିଛୁଳାକେ କୁଆଡେ ଯେ ପଳାଇଲା; ସେକଥା ସେମାନେ ବୁଝିପାରିଲେ ନାହିଁ ।



ପରୀଟି ସେମାନଙ୍କ ମନ କଥା ବୁଝିପାରି କହିଲା- ରୋବର୍ଟ କୁଆଡେ ଗଲା ବୋଲି ଭାବୁଛତ ? ଏଇ ଆକାଶକୁ ଚାହଁ । ପିଙ୍କୁ ଓ ରାକେଶ ଆକାଶକୁ ଚାହିଁଲେ । ରୋବର୍ଟ ଗୋଟେ ଜେଟ୍ ବିମାନଭଳି ଉଡୁଥାଏ । କେତେବେଳେ ଗଛ ଉପରେ ତ, ଆଉ କେତେବେଳେ ବାଦଲ ଭିତରେ ଲୁଚକାଳି ଖେଳୁଥାଏ । ସେ ଉଡ଼ିଲା ବେଳେ ତା ଦେହରୁ ଏକ ପ୍ରକାର ଶବ୍ଦ ବାହାରୁଥାଏ । ଆଉ ତା'ର ସେହି ଶବ୍ଦରେ ପକ୍ଷୀମାନେ ଏଣେ ତେଣେ ଉଡ଼ି ପଳାଇ ଯାଉଥାନ୍ତି । ଏମିତି କିଛି ସମୟ ଖେଳ ଦେଖାଇବାପରେ ରୋବର୍ଟ ତଳକୁ ଓହ୍ଲାଇ

ଆସିଲା । ତା ପରେ ସେ ପିଲା ଦୁହିଁଙ୍କ ହାତକୁ ସୁନ୍ଦର ଡ଼ାଏରୀଟିଏ ବଢ଼ାଇଦେଲା । ଡାଏରୀଟି ଖୋଲି ଦୁହେଁ ଦେଖିଲେ- ସେଥିରେ କେତେ ପ୍ରକାରର ଫଟୋ ଚିତ୍ର ରହିଛି ଏବଂ ସେ ସବୁଚିତ୍ର ପରୀମହଲର । ସେଥିରେ ପରୀରାଣୀର ଚିତ୍ର ବି ରହିଛି ।

ପିଙ୍କୁ ଖୁସି ହୋଇ କହିପକାଇଲା-ଧନ୍ୟବାଦ୍ ରୋବର୍ଟ ମହାଶୟ ! ବହୁତ ବହୁତ ଧନ୍ୟବାଦ, ଆପଣଙ୍କ ଏ ଉପହାରଟିକୁ ଆମେ କେବେହେଲେ ହାତ ଛଡ଼ା କରିବୁ ନାହିଁ । ରୋବର୍ଟ ବି ଗୋଟାଏ ସଲାମ ବଜାଇ କହିଲା- ପିଙ୍କୁ ସାହବ! ତୁମେ ତ ଏଠୁ ଚାଲିଯିବ, ହେଲେ ଏ ବୁଢ଼ାଟା କଥା ଭୁଲିଯିବ ନାହିଁ । ଏତିକି କହି ସେ ଟା ଟା କରି ପିଲା ଦୁହିଁଙ୍କୁ ବିଦାୟଦେଲା ।

ଏଥର ସେମାନେ ପୁଣି ଆଗକୁ ଚାଲିଲେ । କିଛି ବାଟ ଗଲାପରେ ପରୀ ପଚାରିଲା - ଆଛା ପିଙ୍କୁ ! ତୁମ ଦୁହିଁଙ୍କୁତ ଭୋକ ହେବଣି ? ଅନେକ ବେଳୁ ଆସି ବୁଲୁଛ । କିଛିବି ଖାଇନାହଁ ?

ପିଙ୍କୁ କହିଲା - ଆମେ ପରା ରୋବର୍ଟ ସାହେବଙ୍କ ଠାରୁ ଏଇ ଟିକକ ଆଗରୁ ଚେରି କୋଳି ଖାଇଥିଲୁ ଆଉ ଭୋକ ହେବ କାହିଁକି ? ତା' ଛଡା ତମ ରାଇଜ ବୁଲି ଦେଖିଲେ ତ ଜମା ଭୋକ ଶୋଷ ହେଉନି । ଆଉ ଖାଇବୁ କଣ ?

ପରୀ କହିଲା - ତମେ ନୂଆ ନୂଆ ଜିନିଷମାନ ଦେଖୁଛ ବୋଲି ସିନା ଭୋକ ଶୋଷ ଜାଣିପାରୁନ, ହେଲେ ଠିକ୍ ସମୟରେ ନ ଖାଇଲେ ଦେହ ଖରାପ ହେବ । ହଉ ଏବେ ଆସ, ତୁମକୁ ଆଉ କିଛି ନୂଆ ଜିନିଷ ଦେଖାଇବି ।

ଏତିକି କହି ପରୀ ଆଗେ ଆଗେ ଚାଲିଲା ତା'ପଛେ ପଛେ ପିଙ୍କୁ ଓ ରାକେଶ ବି ଚାଲିଲେ । ବାଟରେ ଯାଉ ଯାଉ ସେମାନେ ଦେଖିଲେ ଅଦ୍ଭୂତ ଜୀବଟିଏ ତାଙ୍କ ଆଡ଼କୁ ମାଡ଼ି ଆସୁଛି । ହାତୀ ଭଳି ଥୋଡ଼ ପା ଆଉ ଛୋଟ ଛୋଟ ଆଖି ଅଛି । ଧୀରେ ଧୀରେ କାନ ହଲାଉଛି । ଆଉ ତା'ଉପରେ ଗୋଟିଏ ପରୀ ବି ବସିଛି । ପିଙ୍କୁ ଟିକେ ଡ଼ରିଯାଇ ପଚାରିଲା । ପରୀରାଣୀ, ଏ ଜୀବଟି ପୁଣି କ'ଣ ?

ପରୀ କହିଲା - ସେ ଆମ ରାଇଜର 'ହାତୀ' । ନାଁ ତା'ର 'ଏଲିମା' । ସେ ଆମ ଏଠିକା ପିଲାମାନଙ୍କୁ ପିଠିରେ ବସାଇ ବୁଲାଇବାକୁ ଭାରି ଭଲ ପାଏ ।



ପିଙ୍କୁ କହିଲା - ଆମ ରାଜ୍ୟରେ ନନ୍ଦନକାନନ ବୋଲି ଗୋଟିଏ ଚିଡ଼ିଆଖାନା ଅଛି । ମୁଁ ସେଠିକି କେଇଥର ବୁଲି ଯାଇଛି ଏବଂ ଏମିତି ହାତୀ ପିଠିରେ ବସିଛି । ଭାରି ମଜା ଲାଗେ । ଆମେ ଟିକେ 'ଏଲିମା' ପିଠିରେ ବସି ପାରିବୁକି ?

ପରୀ କହିଲା - ହଁ ନ ବସିବ କାହିଁକି ? ପିଲାଙ୍କୁ ପିଠିରେ ବସାଇ ବୁଲାଇବାତ ତା'ର କାମ । ଏତିକି କହି ପରୀଟି ହାତୀ ପିଠିରେ ବସିଥିବା ମାହୁନ୍ତ କୁ କ'ଣ ଟିକେ ଠାରି ଦେଲା । ସାଙ୍ଗେ ସଙ୍ଗେ ଏଲିମା ଆସି ପିଙ୍କୁ ଆଉ ରାକେଶ ପାଦ ପାଖରେ ଶୋଇପଡ଼ିଲା । ଏକଥା ଦେଖି ପିଲା ଦୁହେଁ ଏକଦମ୍



କାବା । ଦୁହେଁ ମନକୁ ମନ ଭାବୁନାନ୍ତି - ସତରେ, ଭାରି ସୁଧାର ଜୀବଟିଏ ଏଇ ଏଲିମା । ଏତିକିବେଳେ ପରୀଟି କହିଲା - 'ଆଉ ଚାହିଁଛ କ'ଣ ? ତା ପିଠି ଉପରକୁ ଉଠିଯାଅ । ଜମା ଭୟ କରନି ।'

ପରୀ ପାଟିରୁ କଥା ନ ସରୁଣୁ ଖପ୍ ଖାପ୍ ହୋଇ ପିଙ୍କୁ ଓ ରାକେଶ ଏଲିମା ପିଠିରେ ବସି ପଡ଼ିଲେ । ତାପରେ ଏଲିମା ଦୁହିଁଙ୍କୁ ପିଠିରେ ବସାଇ ଢଳି ଢଳି ଆଗକୁ ଚାଲିଲା । ଦୁହିଁଙ୍କୁ ଅନେକ ଜାଗା ବୁଲାଇଲା । ଆଉ ପାଚିଲା ମିଠା ଫଳ ମଧ୍ୟ ଖାଇବାକୁ ଦେଲା । ଦୁହେଁ ଫଳ ଖାଇ ଭାରି ଖୁସି ହେଉଥାନ୍ତି । ଏତିକିବେଳେ ରାକେଶ ପଚାରିଦେଲା - ଆଚ୍ଛା ପିଙ୍କୁ ! ପରୀ ରାଣୀ ପୁଣି କୁଆଡ଼େ ଗଲେ ? ସେ ତ ଆମ ସାଙ୍ଗରେ ଆସୁନାହାନ୍ତି । ପିଙ୍କୁ ସେଇ କଥା ମାହୁନ୍ତକୁ ପଚାରିଲା । ମାହୁନ୍ତ କହିଲା - ତୁମେ ଦୁହେଁ ଯେଉଁ ଜାଗାରୁ ଏଲିମା ପିଠିରେ ବସିଲ,ପରୀ ରାଣୀ ସେଇଠି ରହିଗଲେ । ମୋତେ କିନ୍ତୁ ତୁମମାନଙ୍କ କଥା ବୁଝିବାକୁ କହିଛନ୍ତି । ତେଣୁ ତୁମର କିଛି ଅସୁବିଧା ହେବନାହିଁ ।

ଏଇ କଥାବାର୍ତ୍ତା ଭିତରେ ଏଲିମା କେତେବେଳ ସେମାନଙ୍କୁ ନେଇ ଗୋଟିଏ ବଗିଚା ଭିତରେ ପହଞ୍ଚାଇ ଦେଇଛି, ସେକଥା କେହି ଜାଣି ପାରିନାହାନ୍ତି । ପିଙ୍କୁ ଓ ରାକେଶ ଦେଖିଲେ ବଗିଚା ପାଖରେ



ଝରଣାଟିଏ କୁଳୁକୁଳୁ ହୋଇ ବହିଯାଉଛି । କେତେ ଜାତିର ପଶୁପକ୍ଷୀ ସେଇ ଝରଣା କୂଳରେ ମନ ଆନନ୍ଦରେ ତେଣେ ବୁଲୁଛନ୍ତି । କାହାରି ମନରେ ଟିକେହେଲେ ଡ଼ର କି ଭୟ ନାହିଁ । ପିଲାମାନଙ୍କୁ ଏଲିମା ପିଠିରୁ ଓହ୍ଲାଇ

ଦେଇ ମାହୁନ୍ତ ଏଲିମାକୁ ଝରଣାରେ ଗାଧୋଇ ଦେବାକୁ ନେଇ ଗଲା । ତେଣୁ ପିଙ୍କୁ ଓ ରାକେଶ ବଗିଚାରେ ବୁଲିବାକୁ ଲାଗିଲେ । ଏମିତି ବୁଲୁବୁଲୁ ସେମାନେ ଦେଖିଲେ ଠେକୁଆ ଭଳି ଅଦ୍‌ଭୂତ ଜୀବଟିଏ ତାଙ୍କୁ ଦେଖି ହସୁଛି । ରାକେଶ ସେ ବିଚିତ୍ର ଜୀବଟିକୁ ଦେଖି ଟିକେ ଡ଼ରିଗଲା । ତେଣୁ ପିଙ୍କୁ ତାକୁ ସାହସ ଦେଇ କହିଲା- "ତୁ ଜମା ଡ଼ରନା, ବରଂ ଚାଲ୍ ତା' ପାଖକୁ ଯିବା" ।



ଦୁହେଁ ଯେମିତି ଜୀବଟି ପାଖକୁ ଯାଉଛନ୍ତି ସେ ଦଉଡିବାରେ ଲାଗିଲା । ପିଙ୍କୁ କି ସହଜେ ଛାଡ଼େ ? ସେ ବି ତା' ପଛେ ପଛେ ଧାଇଁଲା । ରାକେଶ ବି ପିଙ୍କୁ ପଛେ ପଛେ ଧାଇଁଥାଏ । ଏମିତି ଧାଇଁ ଧାଇଁ ଶେଷରେ ଦୁହେଁ ଗୋଟେ ନଈକୂଳରେ ପହଞ୍ଚିଲେ । ସେଇଠି ସେ ଜୀବଟି କୁଆଡ଼େ ଯେ ଉଭାନ୍ ହୋଇଗଲା, ସେକଥା ପିଙ୍କୁ କି ରାକେଶ ଜାଣି ପାରିଲେ ନାହିଁ । ସେତେବେଳକୁ ଦଉଡି ଦଉଡି ଦହେଁ ହାଲିଆ ହୋଇ ପଡିଥାନ୍ତି ।

ଦୁହିଁଙ୍କୁ ଭାରି ଶୋଷ ବି ହେଉଥାଏ । ତେଣୁ ନଈ ପାଣିରୁ ଦୁହେଁ ଦି'ଆଞ୍ଜୁଳା ପିଇ ଧୀରେ ଧୀରେ ଆଗକୁ ଚାଲିଲେ । ଏତିକିବେଳେ ଦେଖିଲେ ଟିକେ ଦୂରରେ ନଈପଠା ଉପରେ ଫୁଲମାଳଟିଏ ଶୂନ୍ୟେ ଶୂନ୍ୟେ ଉଡ଼ିଯାଉଛି । ଏକଥା ଦେଖି ଦୁହେଁ ସେଇ ମାଳଟିକୁ ଧରିବାକୁ ଦଉଡ଼ିଲେ । କିଛି ସମୟପରେ ଦୁହେଁ ଯାଇ ମାଳ ପାଖରେ ପହଞ୍ଚି ଗଲେ ଏବଂ ମାଳର ଦୁଇମୁଣ୍ଡକୁ ଧରି ପକାଇଲେ । ଆଉ ତାପରେ ? ଫୁଲ ମାଳଟା



ସେ ଦୁହିଁଙ୍କୁ ଟେକି ନେଲା ଉପରକୁ, ଠିକ୍ ଯେମିତି ଆକାଶକୁ ଉଡ଼ାଜାହାଜ ଉଠେ । ଦୁହେଁ ସେମିତି ଉଡି ଉଡି ଯାଉଥାନ୍ତି ।



ଏମିତି ଅନେକ ବେଳେ କଟିଗଲା ପରେ ମାଳଟି ଧୀରେ ଧୀରେ ତଳକୁ ଖସିଲା । ଆଉ ସେତିକିବେଳେ ପିଙ୍କୁ କାହାର ''ଭାଇ''......ଡ଼ାକ ଶୁଣିଲା । ସେ ଟିକେ ତଳକୁ ଚାହିଁ ଦେଲା, ଆରେ; ଏତ ତାଙ୍କରି ବଗିଚା । ବଗିଚାରେ ରାଲି ଆଉ ବୋଉକୁ ଦେଖି ସେ ''ବୋଉ, ବୋଉ''.....ବୋଲି ଚିତ୍କାର କରି ଉଠିଲା । ଆଉ ତାପରେ ଧପ୍‌କରି ଆସି ତାଙ୍କ ବଗିଚା ଭିତରେ ପଡ଼ିଲା ।





ପିଙ୍କୁର ଡ଼ାକଶୁଣି ବୋଉ ତା'ର ଧାଇଁ ଆସିଲେ । ପଚାରିଲେ - କ'ଣ ହେଲା କିରେ ? ମୋତେ ଡ଼ାକିଲୁ କାହିଁକି ? ପିଙ୍କୁ ନିଦ ମଳ ମଳ ଆଖିରେ ବୋଉକୁ କୁଣ୍ଢାଇ ପକାଇ କହିଲା - ରାକେଶ କୁଆଡେ ଗଲା ବୋଉ ?

ବୋଉ କହିଲେ - ରାକେଶ ! ରାକେଶ ତାଙ୍କ ଘରେ ଶୋଇଥିବ ନା ! ଏଠିକି ଆସିବ କାହିଁକି ? ପିଙ୍କୁ କହିଲା - ନାଁ'ତ, ସେ ଏଇ ଟିକକ ଆଗରୁ ମୋ ସାଙ୍ଗରେ ଆକାଶରେ ଉଡୁଥିଲା । ତୋତେ ଦେଖି ମୁଁ ତଳକୁ ଡେଇଁ ପଡିଲି । ସେ ପୁଣି ଗଲା କୁଆଡେ ?

ବୋଉ ଟିକେ ହସି ଦେଇ କହିଲେ - ସ୍ୱପ୍ନ ଦେଖୁଥିଲୁ କିରେ ?

ପିଙ୍କୁ ଏତେବେଳକୁ ଜାଣିଲା - ସେ ସୁନ୍ଦର ସ୍ୱପ୍ନଟିଏ ଦେଖୁଥିଲା ।

●